# ଅଭ୍ୟାଗତ ସଙ୍ଗୀତକ

=====================

**ଗଣ: ତ ୟ ସ ମ   12/205**

**ବର୍ଣ୍ଣ: SSI ISS IIS SSS**

=====================

ସୂର୍ଯ୍ୟୋଦୟ ହେଲା ଉଠ ଗୋ ମୋ ରାମା
ଡାକେ ତରୁଡାଳେ ତରୁବାସୀକନ୍ୟା -
ପ୍ରାଣପ୍ରିୟ ଏ ପୂର୍ବ ଦିଶା ସେ ପାରେ
କେ ଦେଇ ଗଲା ରକ୍ତିମ ଆଭା ଗାରେ ||1||

*ରାମା= ସୁନ୍ଦରୀ; ତରୁବାସୀ= ପକ୍ଷୀ;*

ପୁଚ୍ଛୀ ରବକାଳେ ଜନସତ୍ର ଦ୍ୱାରେ
ଶଙ୍କାକୁଳ କଣ୍ଠେ କହି ଚାଲେ କେହି —
ଏ ନିର୍ଗମ ଖୋଲା ରଖ ବେଗେ ରକ୍ଷୀ
ଆମନ୍ତ୍ରଣ ମାତ୍ରେ ଚଳିବେ କେ କାହିଁ ||2||

*ପୁଚ୍ଛୀ= ଉଷଘୋଷ, ତାମ୍ରଚୂଡ, ଉଦ୍ରଥ, କୁକୁଡା; ଜନସତ୍ର= ଲୋକଙ୍କ ଆଶ୍ରୟ ନିବାସ; ନିର୍ଗମ=* ***gate****, ଫାଟକ;*

ଆଭ୍ୟାଗତ ଏ ନୂତନ ବର୍ଷାରମ୍ଭେ
ଜାଗେ ନବ ଚିତ୍ତେ ନବ ହର୍ଷେ ଭାଷା ।
ଆଲୋକ ପଡନ୍ତେ ବସୁମାତା ବକ୍ଷେ
ପ୍ରାଚୀନ ନିରାଶା ସ୍ତୁପ ମଧ୍ୟେ ଆଶା ॥3॥

ବାରୀଶ ତଟସ୍ଥା ଅପରୂପା ପଲ୍ଲୀ
ଏକ କ୍ଷଣ ମଧ୍ୟେ ବୁଡିଲା ଉର୍ବଙ୍ଗେ ।
ମଲ୍ଲିପ୍ରଚରେ ହୃଷ୍ଟ ଲତାନ୍ତେ ବଲ୍ଲୀ,
ମୋ ଏ କବିତା ଗ୍ରନ୍ଥନ ସଙ୍ଗେ ସଙ୍ଗେ ॥4॥

*ବାରୀଶ= ସମୁଦ୍ର; (ପଲ୍ଲୀ= ଦ୍ୱାରିକା କଥା କହିଛି,); ଉର୍ବଙ୍ଗ= ସମୁଦ୍ର; ପ୍ରଚର= ମିର୍ଗ; ଲତାନ୍ତ= ଫୁଲ; ବଲ୍ଲୀ= ଲତା; ଗ୍ରନ୍ଥନ= ସଂରଚନ;*

କେତେ ଯଶ ମର୍ତ୍ତ୍ୟେ ଲଭି ଏକାଧାରେ
ରାଜା ଗଣ ନିଦ୍ରା ଲଭିଲେ ବଲ୍ଲୂରେ ।
ହେଲେ ଅଛି ଏ ଗୁଚ୍ଛଫଳା ସଙ୍କାଶେ
ନିଃଶଙ୍କ ଦିଏ ତା ମଧୁ ତୃଷ୍ଣାନାଶେ ॥5॥

*ବଲ୍ଲୂର= ତରୁଗୁଳ୍ମଗହଳ; ଗୁଚ୍ଛଫଳା= ଅଙ୍ଗୁର; ସଙ୍କାଶ= ସାନ୍ନିଧ, ପାଖ; ନିଃଶଙ୍କ= ନିର୍ଭୟ;*

ପକ୍ଷୀ ସୁମନେ ପାତିଛି ଭିକ୍ଷା ଥାଳୀ —
ଯେ ମନ୍ତ୍ର ହୁଏ ଆନନ୍ଦ ଉଚ୍ଚାରନ୍ତେ ।
ଓଷ୍ଠେ ମଦିରା ତୋ ଦିଅ ମୋତେ ଢାଳୀ
ସେ ଗୀତ ମିଳେ ନା, ଶୁଖି ଚାଲେ ଗ୍ରନ୍ଥେ ॥6॥

ହେମନ୍ତର ଜାଡେ ଦିଅ ସୋମସ୍ପର୍ଶ

ବାରେ ଭରି ଦେ ମୋ ଉଦରେ ଶ୍ରୀତାଳ ।
ଚର୍ଯ୍ୟାପ୍ରିୟ ପକ୍ଷୀ ସମ କାଳୋପୃକ୍ଷ,

ବେଗେ ଉଡି ସେ ଲଙ୍ଘିବ ତାରାମାଳ ॥7॥

*ଶ୍ରୀତାଳ= ମଦିରା; ଚର୍ଯ୍ୟା= ଭ୍ରମଣ; କାଳ ଉପୃକ୍ଷ= ସମୟ ଡେଣା ମେଲେଇ ପ୍ରସ୍ତୁତ;*

ରାତ୍ରୀ ସରିବାରେ ଫୁଲରାଣୀ ହାସ୍ୟେ

ଲାଗେ ପରିପୂର୍ଣ୍ଣା ଅପରୂପା ଧନ୍ୟା ।
ସନ୍ଧ୍ୟାଗମ ହେଲେ ଯିବ ପୃଥ୍ୱୀ ପାଶେ

ମାତା ତରୁବଲ୍ଲୀ ଅଭିନନ୍ଦା କନ୍ୟା ॥8॥

*ଯିବ...= ଝରି ଯିବ; ତରୁବଲ୍ଲୀ= ଲତା; ଅଭିନନ୍ଦା= ଆନନ୍ଦ;*

ରାଜା ସ୍ୱଜପାୟୀ ଶଠତାପୂଜାରୀ

ସଙ୍ଗେ ଇତିହାସେ ସ୍ଥିତ ଯେତେ ଯୋଦ୍ଧା ।
ସୌରଭ୍ୟ ନ ଦେବେ ସବୁ ଅତ୍ୟାଚାରୀ;

ସଙ୍ଗେ ଚଳ - ଭାସେ ଯହିଁ ରାତ୍ରୀଗନ୍ଧା ॥9॥

*ସ୍ୱଜ= ରକ୍ତ; ସୌରଭ୍ୟ= ସୁବାସ; ଭାସେ= ଉଜ୍ଜ୍ୱଳ ହୁଏ;*

ଏ ପାର୍ଶ୍ୱ ହସେ ଶ୍ୟାମଳ ଶସ୍ୟକ୍ଷେତ୍ରେ

ଅନ୍ୟତ୍ର ସଦା ନିର୍ଜଳ ତୃଷ୍ଣାଭୂମି ।
ଏ ଦେଶ ନୁହେଁ ଶାସିତ କାହା ହସ୍ତେ

ନାହିଁ ପ୍ରଭୁ, ବାର୍ତ୍ତାବହ ଆଜ୍ଞାକର୍ମୀ ॥10॥

ତୃଷ୍ଣା= ମୃତ୍ୟୁକନ୍ୟା;

ଅଭ୍ୟାଗତ ସଙ୍ଗୀତକ  (ଛନ୍ଦ: ରୁରୁବାହୀ)

ହାତେ ମଦିରାପାତ୍ର ସୁଗୀତିଗ୍ରନ୍ଥ
ସଙ୍ଗେ ଉଦରାର୍ଥେ ଥିବ ଅଳ୍ପାହାର ।
ସଙ୍ଗୀତର ତାଳେ କର ସର୍ବେ ନୃତ୍ୟ
ମର୍ତ୍ତ୍ୟେ ହସିବ ସ୍ୱର୍ଗର ନୃତ୍ୟାଗାର ॥11 ॥

କେ ଭାଳୁଛି ପୃଥ୍ୱୀ ଅଧୁନା ସାନନ୍ଦା
କେ ଖୋଜୁଛି ଆଗାମିଦିନେ ଆନନ୍ଦ ।
ଦୂରେ ଜୟନାଦେ ଦିଶୁ ଯେତେ ସ୍ପର୍ଦ୍ଧା
ପାଶେ ଅଛି ଯାହା କର ତା ଆସ୍ୱାଦ ॥12॥

ଗୋଲାପ ସୁତା ଡାକୁଛି ମାଳୀ ଆସ
ସ୍ନେହେ ନିଅ ମୋତେ ନିଜ ହାତେ ତୋଳି ।
ଯତ୍ନେ ତୁମ ଉଦ୍ୟାନର ଧାରେ ବାସ
ଦେବ ପ୍ରିୟ ମୋତେ ମମତାରେ ବୋଳି ॥13॥

ଅଭ୍ୟାଗତ ସଙ୍ଗୀତକ  (ଛନ୍ଦ: ରୁରୁବାହୀ)

ସୂକ୍ଷ୍ମା ସ୍ତର ପୃଷ୍ଠେ ହିମଶଯ୍ୟା ଯେହ୍ନେ
ବୈହାୟସ ବକ୍ଷେ ଘଡିକେ ନିଶ୍ଚିହ୍ନ ।
ଆଶା-ସରସୀ ଦର୍ଶନ ପୂର୍ବେ କେଣେ
ତୃଷ୍ଣାତୁର ପକ୍ଷୀତନୁ ତେଜେ ପ୍ରାଣ ॥14॥

*ସୂକ୍ଷ୍ମା= ବାଲି; ହିମ= ତୁଷାର; ବୈହାୟସ= ପବନ;*

ନିର୍ଦ୍ରବ୍ୟ କି ଅର୍ଥାନ୍ୱିତ ମାନୀ ସର୍ବେ
ନିଶ୍ଚେ ଜଳିବେ ଲେଲିହ ହେମଜ୍ୱାଳେ ।
ଯେ ଅଞ୍ଚତିରେ ଦଗ୍ଧ ନ ଚାହେଁ କେବେ —
ସେ ଦାହନ ମୋତେ ଦିଅ କାଳେ କାଳେ ॥15॥

*ନିର୍ଦ୍ରବ୍ୟ= ନିର୍ଦ୍ଧନ; ଅର୍ଥାନ୍ୱିତ= ଧନୀ; ହେମଜ୍ୱାଳ, ଅଞ୍ଚତି= ଅଗ୍ନି;*

**202211010151**

ମୌନେ ଦିନରାତ୍ରୀ-ଚତୁରଙ୍ଗେ ମଗ୍ନ
ଅଜ୍ଞାତର ହାତେ ନର ସର୍ବେ ଗୋଟି ।
କେତେ ନୃପ ନେତ୍ରେ ମରି କେତେ ସ୍ୱପ୍ନ
କାଳେ ଚଳିଲେ ମେଦିନି କୋଳେ ଲୋଟି ॥16॥

ଚତୁରଙ୍ଗ= ଚେଷ୍ ଖେଳ;

କେତେ ଶବଭୂମେ ସ୍ଥିର ରାଜା ସର୍ବେ
ବକ୍ଷେ ପଶୁପକ୍ଷୀଙ୍କର ଚାଲେ ନାଟ ।
ତେଜେ ମଳ କେ ମୂତ୍ର ରଖେ ପ୍ରସ୍ରାବେ
ରକ୍ଷା ଲଭିବା ଲାଗି ନ ଥାଏ ବାଟ ॥17॥

ଯୋଦ୍ଧା ତନୁରକ୍ତେ ଫୁଟି ନାନା ବର୍ଣ୍ଣେ
ପୁଷ୍ପେ ନ ମିଳେ ଭାବନପୂର୍ଣ୍ଣ ଗନ୍ଧ ।
ସୌରଭ୍ୟ ମିଳେ ଯା ସୀତିପୁଷ୍ପେ ପର୍ଣ୍ଣେ
ପ୍ରେମୀଙ୍କର ସେ ତ୍ୟାଗରୁ ଜାତ ସ୍ୱନ୍ଦ ॥18॥

*ସିତି= ଧଳା;* **202211011658**

ଏ ସ୍ରୋତର ଧାରେ ଫୁଟି ନାନା ପୁଷ୍ପ
ଆନନ୍ଦତରଙ୍ଗେ ସକଳେ ତାରୁଣ୍ୟେ ।
ଧୀରେ ରଖ ପାଶେ ଫୁଲମାଳା ଶୂର୍ପ
ପ୍ରେମୀଯୁଗ ନିଦ୍ରାଗତ ପୁଷ୍ପାରଣ୍ୟେ ॥19॥

ଯେ ସୋମ କରେ ରକ୍ଷିତ ମର୍ମାଘାତେ
ଯେ ଚିତ୍ତ ରଖେ ଫୁଲ୍ଲିତ ନିତ୍ୟ ପ୍ରେମେ ।
ସେ ପାତ୍ରଟି ହାତେ ଦିଅ ମୋ ପ୍ରୀତ୍ୟର୍ଥେ
ବେଗେ ଯିବି ଦୂରେ ବିଧିଲେଖା ବର୍ମେ ॥20॥

ଆତ୍ମୀୟ ଜନେ ଯେ ମଦିରା ଆଶ୍ୱାସେ
ତୃପ୍ତୋଦର ସଂସାର କଲେ ଆପୂର୍ତ୍ତି ।
ଶେଷେ ଚଳିଲେ ସେ ରସ ଦିବ୍ୟ ସ୍ୱର୍ଗେ
ମୋତେ ଦିଅ ଏବେ, ମୁଁ ବି  ପାଏ ସ୍ଫୁର୍ତ୍ତି ।21

କେ ରିକ୍ତ କଲେ ଆଳୟ କା ଉଦ୍ଦେଶ୍ୟେ
ସ୍ୱଚ୍ଛନ୍ଦ ଧରିତ୍ରୀ ମିଳିଲା ଏ ଭାଗ୍ୟେ ।
ଆମେ ଚଳିବା ସେ ହି ଅଦେଖା ଦେଶେ
ଏ ସୃଷ୍ଟିର ସର୍ବେ ଚଳିବେ ସେ ମାର୍ଗେ ॥22॥

କାଳେ ସବୁ ଲୀଳା ସରିବା ପଶ୍ଚାତେ
ନିଦ୍ରା ଭଜିବେ ମାଟିର ତଳ୍ପେ ପ୍ରାଣୀ ।
ଏବେ ବୁଡି ଯା ସେ ରସରେ ମୋ ସାଥେ
ସ୍ଥାୟୀ ନୁହଁ ଏ ପାର୍ଥିବ ମାୟା ଜାଣି ॥23॥

**202211020228**

ଖୋଜେ ଅଧୁନା କେ ସୁଖ କେ ବା ଆଗେ,
ଦେଖେ - କିଛି ତା ନାହିଁ କପାଳେ ଲେଖା ।
ପ୍ରାତଃ ଶୁକ ଗାଏ ଶକୁନଜ୍ଞା ସାଙ୍ଗେ —
ମିଥ୍ୟା - ନ ଥିଲା ବସ୍ତୁର ଏ ଉପ୍ରେକ୍ଷା ॥24॥

*ଶକୁନଜ୍ଞା= **lizard**, ଝିଟିପିଟି;*

ଧୀମାନ୍ ଇହ ଲୋକାନ୍ତର ଚର୍ଚ୍ଚା ସାରି
ଶାସ୍ତ୍ରୋକ୍ତିର ନାନା ସରଳାର୍ଥେ ମଜି ।
ଶେଷେ ଗମିଲେ ଭୂମିକୁ ଶଯ୍ୟା ପାରି
ସାଥୀ ମର ନା ସେ ବହିର୍ବିଦ୍ୟା ଖୋଜି ॥25॥

*ଧୀମାନ୍= ଜ୍ଞାନୀ;*

ଶାସ୍ତ୍ରୀ ଲଢିବେ ପୁସ୍ତକ ଲେଖା ପାଠେ,
ବାରେ ଦିଅ ମୋ ହାତକୁ ତୁମ୍ଭେ ହାତ ।
ଜ୍ଞାନାଶ୍ରିତ ନିଶ୍ଚେ ଚଳିବେ ସେ ବାଟେ
ବିଶ୍ୱେ ଶତଧା ଜ୍ଞାନର ଏ ଉତ୍ପାତ ॥26॥ଚ

**202211021324**

ମୋ ଯୌବନ କାଳେ କଲି ଯା ଶାସ୍ତ୍ରାର୍ଥ
ପ୍ରାଜ୍ଞଜନ ମଧ୍ୟେ ବସି ଚର୍ଚ୍ଚାକ୍ଷେତ୍ରେ ।
ପ୍ରତ୍ୟାଗମ ବେଳେ ଥିଲି ସେ ଦ୍ୱାରସ୍ଥ
ସତ୍ତ୍ୱେ ପଶିବା ଲାଗି ଥିଲା ଯା ମୁକ୍ତ ॥27॥

ଜ୍ଞାନିଙ୍କର ନାନା ମତରେ କୈଶୋରେ
ଜ୍ଞାନାଙ୍କୁର ଯେ ରୋପିଲି ଦାବପ୍ରଷ୍ଠେ ।
ହେଲା ଫଳ ଏ - ଆସି ମୁଁ ବନ୍ୟା ଧାରେ
ବାତ୍ୟା ସମ ଦୂରେ ଯିବି ବେଳା ଅନ୍ତେ ॥28॥

**202211021754**

ମୋ ଆଗମ ଏ ଭୂମିକୁ କିମ୍ବା ହେଲା
ନିର୍ଦ୍ଦେଶ ଥିଲା ଆସିବି ପୃଚ୍ଛା ତେଜି ।
କିମ୍ପାଁ ଯିବି - ଏଠା ଭୁଲି, କେବେ ବେଳା -
ଅଜ୍ଞାତ - କି ଭାବେ ଯିବି ପନ୍ଥା ହେଜି ॥29॥

*ଆସିବି ପୃଚ୍ଛା ତେଜି= ପ୍ରଶ୍ନ କରିବାସକ ମନା;*

ଚିହ୍ନା କି ଜଣା ନାହିଁ ମୁଁ ବନ୍ଧା ହେଲି
ମାୟା ମମତାରେ ଦିଗ ହେଲା ଭ୍ରଷ୍ଟ ।
ସମ୍ମୋହନ ପାଶେ ଛଦ ଦେଲା ମେଲି
କେବେ ଖସିଲେ ହେବ କି ପନ୍ଥା ସ୍ପଷ୍ଟ ॥30॥

ସୋପାନରୁ ସୋପାନକୁ ଯାତ୍ରା ଅନ୍ତେ
ସିଂହାସନ ହେଲା କବଳେ ମୋ ସାରା ।
ସପ୍ତକ୍ଷିତି ରାଜ୍ୟେ ନୃପ ହେବା ସତ୍ତ୍ୱେ
ପ୍ରାଣାନ୍ତ କି ଭାଗ୍ୟେ ନ ଥିଲା ମୋ ଚାରା ॥31॥

*ସପ୍ତକ୍ଷିତି= ସପ୍ତବ୍ରହ୍ମାଣ୍ଡ; ପ୍ରାଣାନ୍ତ= ମରଣ; ଚାରା= ନିୟନ୍ତ୍ରଣ, ଉପାୟ;*

ଯେ ଦ୍ୱାର ସମକ୍ଷେ ମିଳିଲା ସଂରୁଦ୍ଧ
ଅପ୍ରାପ୍ତ ଥିଲା ଚାବିଟି ସେହି ପାଶ ।
ଏକ କ୍ଷଣ ହେଲା ମିଛ କା ସାନ୍ନିଧ,
ଏକ କ୍ଷଣ ଅନ୍ତେ ସବୁ ଶୂନ୍ୟାକାଶ ॥32॥

*ସଂରୁଦ୍ଧ= ବନ୍ଦ;*

ଆକାଶକୁ ବାରେ କଲି ଯେବେ ପ୍ରଶ୍ନ -
'ଦିଗ୍ଦର୍ଶନ ମୋତେ ଦିଅ କେବେ ମୋତେ' ।
ସେ ଉତ୍ତର ଦେଲା - ଅବିନାଶୀ ଜ୍ଞାନ,
'ଦିବାନ୍ଧ ହିଁ ଜୀବଙ୍କ ବିଧାତା ମର୍ତ୍ତ୍ୟେ ॥' 33॥

ଏହା ଶୁଣି ଭାଷେ ଘଟ ଏକ ସ୍ନେହେ
ବେଗେ କର ଆସ୍ୱାଦନ ମୋତେ ସାଥୀ ।
କେବେ ମିଶିଲେ ମୋ ଭିତରେ ତୋ ଦେହେ
କେ ଦେବ ସୁରା ପାନର ଏତେ ଶାନ୍ତି ॥34॥

ସେ ମିଷ୍ଟ କଥାରେ ମନ ଭାଳେ ଆରେ
ଏ ମଧ ଥିଲା ଜୀବିତ କେବେ ଆଗେ ।
ତା ଓଠକୁ ମୋ ଚୁମ୍ବନ ବାହାନାରେ,
ମୁଁ ଛାପିଲି ଆତ୍ମୀୟ ସିଏ ମୋ ଲାଗେ ॥35॥

ଜ୍ୟୋସ୍ନାମୟ ଭୂମେ ଗତ ସନ୍ଧ୍ୟେ ଏକ
ଚୀତ୍କାରି କହେ କୁମ୍ଭ କୁଲାଳ ଦ୍ୱାରେ ।
"ଧୀରେ ପିଟ ମୋତେ," କହୁଥାଏ, "ଦେଖ,
କୁମ୍ଭାର ! ମୁ ତୋ ଅସ୍ଥିରୁ ମଜ୍ଜାସାରେ ॥"36॥

**202211060101**

ଏହା ଶୁଣି ଭାଷେ ଘଟ ଏକ ସ୍ନେହେ
ବେଗେ କର ଆସ୍ୱାଦନ ମୋତେ ସାଥୀ ।
କେବେ ମିଶିଲେ ମୋ ଭିତରେ ତୋ ଦେହେ
କେ ଦେବ ସୁରା ପାନର ଏତେ ଶାନ୍ତି ॥34॥

ସେ ମିଷ୍ଟ କଥାରେ ମନ ଭାଳେ ଆରେ
ଏ ମଧ ଥିଲା ଜୀବିତ କେବେ ଆଗେ ଃ
ତା ଓଠକୁ ମୋ ଚୁମ୍ବନ ବାହାନାରେ,
ମୁଁ ଛାପିଲି ଆତ୍ମୀୟ ସିଏ ମୋ ଲାଗେ ॥35॥

ଜ୍ୟୋତ୍ସ୍ନାମୟ ଭୂମେ ଗତ ସଞ୍ଜେ ଏକ
ଚୀତ୍କାରି କହେ କୁମ୍ଭ କୁଲାଳ ଦ୍ୱାରେ ।
"ଧୀରେ ପିଟ ମୋତେ," କହୁଥାଏ, "ଦେଖ,
କୁମ୍ଭାର ! ମୁ ତୋ ଅସ୍ଥିରୁ ମଜ୍ଜାସାରେ ॥"36॥

**202211060101**

କାଳକ୍ଷୟ ତୁଚ୍ଛା କଲ ଯାତ୍ରୀଶାଳେ
କିମ୍ପାଁ ମଦିରା ବର୍ଜିଲ ପଶ୍ଚାତ୍ତାପେ ?
ଏ ଜୀବନ ନୌକା ଖର ଊର୍ମୀମାଳେ
କେବେ ସହସା ଓଲଟି ପାରେ ଆପେ ॥37॥

ଏକ କ୍ଷଣ ମଧ୍ୟେ ସବୁ ଯାଏ ନାଶ
କେ ଜାଣିଛି କା ଭାଗ୍ୟର ଲେଖା କାଲି ।
ଏକ କ୍ଷଣକେ ପାଇବ ଜୀବନ୍ୟାସ,
ହର୍ଷେ ମଦିରାରେ କର ଚିନ୍ତା ଖାଲି ॥38॥

*ଖାଲି= ଖଲାସ;*

ଏ ଭ୍ରାନ୍ତ ହଁ ନା ତର୍କଣ ସୀମାହୀନ
କେ ତାର ସମାଧାନ ନ ପାରେ ଜାଣି ।
ଏ ପାତ୍ର ନୁହେଁ ତର୍କଠୁ କେବେ ନ୍ୟୂନ
ମିଥ୍ୟା ନୁହଁ ନାନା ବରଣେ ତା ପାଣି ॥39॥

କେବେ ଅଛପା ନାହିଁ ତ ଏ କାହାଣୀ,
ଵନ୍ଧ୍ୟା କରି ନିଷ୍କାସନ ମୋ ଆବାସୁ ।
ଦ୍ରାକ୍ଷାଵନିତା ଆଣିଛି ଭାର୍ଯ୍ୟା ଜାଣି
ଏକ କ୍ଷଣ ଦୂରେ ନୁହଁ ସେ ମୋ ପାଶୁ ॥40॥

ଉଚ୍ଚେ କିଛି ନୀଚେ କଛି ମାନାଧାୟେ
ମୋ କାଳକ ମୋ ହାତରୁ ଦୂରେ ମାତ୍ର ।
ମୋ ଯୌବନ ବାର୍ଦ୍ଧକ୍ୟର ଛତ୍ରେ ଛତ୍ରେ
ଚିତ୍ତେ ରହି ଥାଏ ମତିହାରୀ ପାତ୍ର ॥41॥

ମୋ ପାସ ଥରେ ସ୍ଵର୍ଗର ସେ କେ ଦୂତ
ସ୍ନେହେ କିଛି ଦେଲେ ସହସା ସେ ରାତ୍ରେ ।
ଦେଖେ କିସ ତାହା ଭିତରେ ଯେମନ୍ତ
ସ୍ଵର୍ଗୀୟ ସୁରା ଦ୍ରବ୍ୟ ଥିଲା ସେ ପାତ୍ରେ ॥42॥

**202211072323**

ଚୌରାଅଶି ଲକ୍ଷଙ୍କ ସୁଖେ ବିନ୍ୟସ୍ତ
ମର୍ତ୍ତ୍ୟେ ରଖି ଥାଏ ପ୍ରଳୟେ ସଂଵର୍ତ୍ତେ ।
ସ୍ତମ୍ଭୀକୃତ ସର୍ବେ ଯହିଁରେ ଆଶ୍ୱସ୍ତ
ସେ ଜାଣିବ ସତ୍ୟ ଭ୍ରମପୂର୍ଣ୍ଣ ସତ୍ତ୍ୱେ ॥43॥

ସାରା ଜଗତେ ଯା ବିଜୟୀ ସର୍ବତ୍ର
ଯୋଦ୍ଧାଙ୍କର ଶୈଥିଲ୍ୟ ଦିଏ ଯା ରକ୍ତେ ।
ଆନନ୍ଦ ମନେ ତା କର ଜିହ୍ୱାଗ୍ରସ୍ଥ
ଜ୍ୱାଳା ଯିବ ଦୂରେ ମଦିରା ସେବନ୍ତେ **॥44॥**

ବୈଜନ୍ୟର କୋଳାହଳମୁକ୍ତ କ୍ଷେତ୍ରେ
ଜ୍ଞାନୀ ଲଢି ତର୍କେ ଚଳିବା ଅଭ୍ୟାସେ ।
ତୁମ୍ଭେ ମଦିରା ଘେନ ନଦୀ-ସଙ୍ଗୀତେ
ଏ ଜୀବନ କେବେ ନ ବିତା ଔଦାସ୍ୟେ **॥45॥**

ଅଭ୍ୟାସେ= ଅଭ୍ୟାସ କରେ;

# ସମାପ୍ତ

by
**Lalatendu Kabi** ଲଲାଟେନ୍ଦୁ କବି